

ଟ 8.50

ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ




# ମଙ୍ଗୁର ନଟୁ

କାମାକ୍ଷି ବାଳସୁବ୍ରମଣ୍ୟନ୍

ଅଳଙ୍କରଣ

ଅମିତାଭ ସେନ୍‌ଗୁପ୍ତ

ନେହେରୁ ବାଳ ପୁସ୍ତକାଳୟ

# ମଙ୍ଗୁର ନଟୁ

କାମାକ୍ଷି ବାଳସୁବ୍ରମଣ୍ୟନ୍

ଅଳଙ୍କରଣ

ଅମିତାଭ ସେନ୍‌ଗୁପ୍ତ

ଅନୁବାଦ

ଭୀଷ୍ମ ପ୍ରସାଦ ରଥ



ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

1993 (ଶକାବ୍ଦ 1914)

ISBN-81-237-0285-6
ଟ 8.50
Mangu's Top *(Oriya)*
ନିର୍ଦ୍ଦେଶକ, ନ୍ୟାସନାଲ ବୁକ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ ପାର୍କ,



# ମଙ୍ଗୁର ନଟୁ

ମଙ୍ଗୁ ଗୋଟିଏ ନଟୁ ଚାହୁଁଥିଲା । ଯାହାକି ପୁରା ନୂଆ ଓ ଚିକ୍‌ଚିକ୍ ହୋଇଥିବ ।

କିନ୍ତୁ ନଟୁ କିଣିବା ପାଇଁ ତା' ପାଖରେ ପଇସା ନଥିଲା । ତା'ର ବାପା ମା' ତାକୁ ନଟୁଟିଏ କିଣି ଦେବାକୁ କହିଥିଲେ ।

ମଙ୍ଗୁ ତାଙ୍କ ଘର ବାହାରେ ବସି ଅନ୍ୟ ପିଲାମାନଙ୍କ ଖେଳ ଦେଖିଲା । ସେମାନଙ୍କର ନଟୁ, ଗୁଡି ଓ ବାଟି ଇତ୍ୟାଦି ଥିଲା । ସେମାନେ ଖୁସିରେ ଦୌଡୁଥିଲେ, ହସୁଥିଲେ, ଜିତୁଥିଲେ, ହାରୁଥିଲେ ।



କେବଳ ମଙ୍ଗୁ ଏକୁଟିଆ ଥିଲା ।

ଯେତେବେଳେ ଅନ୍ଧାର ହେଲା,ସବୁ ପିଲା ଘରକୁ ପଳାଇ ଗଲେ । କିନ୍ତୁ ମଙ୍ଗୁ ତା' ବସିଥିବା ଜାଗାରେ ବସି ରହିଲା ।

ସେ ହଠାତ୍ ଦେଖିଲା – ନଟୁଟିଏ ପଡିଛି । ଏହା ଗୋଟିଏ ବଡ ପଥର କଡରେ ପଡିଥିଲା ।



ମଙ୍ଗୁ ତା'କୁ ଉଠାଇଲା । ଏହା ପୁରୁଣା ଥିଲା । ଏଥିରେ କଣା ଦାଗ ମଧ୍ୟ ହୋଇଥିଲା । ଏଥିରେ ପ୍ରାୟ ରଙ୍ଗ ନ ଥିଲା ।

କିନ୍ତୁ ଏହା ଭଲ ନଟୁଟିଏ ଥିଲା ।

ମଙ୍ଗୁ ଏହାକୁ ଘରକୁ ଆଣିଲା । ସେ ନଟୁ ଚାରିପଟେ ଦଉଡି ଗୁଡାଇଲା ଏବଂ ଚଟାଣରେ ପକାଇ ବୁଲାଇଲା ।

ଏହା ବୁଲିଲା !



କିନ୍ତୁ ଏହାର ରଙ୍ଗ ଛାଡି ଯାଇଥିଲା ଓ କଣା କଣା ଦାଗ ହୋଇ ଏହା ମଳିନ ଦିଶୁଥିଲା ।

ମଙ୍ଗୁ ଭାବିଲା ନଟୁଟି ବହୁତ ବୁଲିଛି । ତେଣୁ ଭଲ ଦିଶୁନାହିଁ ।

ସେ ନଟୁଟିକୁ ହାତରେ ଧରିଲା ଓ ଭଲଭାବେ ଦେଖିଲା ।




ସେ ନଟୁଟିକୁ ଖଣ୍ଡେ ଅଖାରେ ବାନ୍ଧିଲା ।

ତା' ପରେ ଖଣ୍ଡିଏ ଇଟାରେ ଆସ୍ତେ ଆସ୍ତେ ଘଷିଲା ।

କଣାଦାଗ ଗୁଡ଼ିକ ଆଉ ସେତେ ଖରାପ ଦିଶିଲା ନାହିଁ । ମଙ୍ଗୁ ଏହାକୁ ତେଲରେ ବୁଡାଇ ରଙ୍ଗ କରିବାକୁ ସ୍ଥିର କଲା ।


ତା'ର ମା' ତାକୁ ଚାମୁଚାଏ ତେଲ ଦେଲେ ।



ତା'ର ବାପା ତା'ଙ୍କ ସାଙ୍ଗ ପାଖରେ ବଳିଥିବା କିଛି ରଙ୍ଗ ଦେଲେ ।



ସକାଳେ ମଙ୍ଗୁ ତା 'ର କାମ ଆରମ୍ଭ କଲା ।
ତେଲ ଚିକ୍କଣ ଦିଶିଲା ।
ରଙ୍ଗ ଚକ୍‌ଚକ୍ କଲା ।
ନଟୁଟି ଶୁଖିବା ପାଇଁ ଖରାରେ ରହିଲା । ଶୁଖିବା ପାଇଁ ଏହାକୁ ପୁରା ଦିନ ଓ ରାତିଟିଏ ଲାଗିଲା ।



ଆଉ ଯେତେବେଳେ ରାତି ହେଲା, ମଙ୍ଗୁ ଶୋଇ ପଡିଲା ଓ ତା' ନଟୁକୁ ସ୍ୱପ୍ନରେ ଦେଖିଲା ।

ସେ ଯେତେବେଳେ ଉଠିଲା, ନଟୁଟି ତା' ପାଖରେ ଥିଲା । ଶୋଇଲା ବେଳେ ନଟୁଟି ତା' ପାଖକୁ ଗଡି ଆସିଥିଲା ।

ମଙ୍ଗୁ ଅତି ସ୍ନେହରେ ନଟୁଟିକୁ ଚାହିଁଲା । କି ସୁନ୍ଦର ଦିଶୁଥିଲା ଏହା ! କି ସୁନ୍ଦର ରଙ୍ଗ ଥିଲା ଏଥିରେ !



କିନ୍ତୁ ଏ କ'ଣ ? ଏଥିରେ ଗୋଟିଏ ପଟରୁ ଆରପଟ ପର୍ଯ୍ୟନ୍ତ ଗୋଟିଏ କଣା ଥିଲା । ନଟୁ ଉପରେ ଏହା କେବଳ ଖଣ୍ଡିଆ ଦାଗଟିଏ ନ ଥିଲା । ନଟୁଟି ହୁଏତ ଆଉ ବୁଲିବ ନାହିଁ ।

ମଙ୍ଗୁ ମନ ଦୁଃଖ କଲା । ତା'ପରେ ନଟୁଟି କେମିତି ବୁଲିଥିଲା ମନେ ପକାଇଲା । ନଟୁ ଚାରିପଟରେ ଜୋର୍‌କରି ସୁତା ଖଣ୍ଡେ ଗୁଡାଇଲା ଓ ତଳେ ବୁଲାଇ ଛାଡି ଦେଲା ।



ସୁନ୍ଦର ରଙ୍ଗ ଦେଖାଇ, ସୂର୍ଯ୍ୟ କିରଣରେ ଚିକ୍ ଚିକ୍ କରି ନଟୁଟି ଜୋର୍‌ରେ ବୁଲିଲା ଏବଂ କଣା ଦାଗରେ ପବନ ଲାଗି ଏହା ସୁସୁରି ମାରିଲା ପରି ଶବ୍ଦ ମଧ୍ୟ ହେଲା ।

ମଙ୍ଗୁକୁ ନିଜର ଖେଳନା ମିଳିଗଲା । ତା' ଘୁରୁଥିବା ସୁସୁରି ମାରୁଥିବା ନଟୁ !





